ISSN: 2456-9194, Vol. III, Issue. III, Dec 2019

# ପ୍ରତ୍ୟୟ

(Journal of Odia Language, Culture and Science)

JournalHomepage:http://cphfs.in/research.php

# ସଂସ୍କୃତି, ଜଗତୀକରଣ ଓ ରାଜନୀତିକ ସଂଗଠନ

**ବିଜୟଲକ୍ଷ୍ମୀ ଦାଶ**

ଆସିଷ୍ଟାଣ୍ଟ ପ୍ରଫେସର

ଭାଷା ସାହିତ୍ୟ ବିଭାଗ, ରେଭେନ୍ସା ବିଶ୍ୱବିଦ୍ୟାଳୟ

E-mail: dash_bijayalaxmi@yahoo.com

*ସଂକ୍ଷିପ୍ତ ସାର : ଆର୍ଥନୀତିକ ଓ ଜ୍ଞାନଭିତ୍ତିକ ସଂଚାର ବିଦ୍ୟାର ବିକାଶ ଓ ପରିପୋଷଣ ଯୋଗୁଁ ପ୍ରାୟ ଦୁଇ/ତିନି ଦଶନ୍ଧି ହେବ ପୃଥିବୀରେ ବିରାଟ ପରିବର୍ତ୍ତନର ସୂତ୍ରପାତ ହୋଇଛି । ଏ ସଂକ୍ରାନ୍ତରେ ଚର୍ଚ୍ଚା ମଧ୍ୟ ବେଶ୍ ଘନ । ଜନସାଧାରଣଙ୍କ ଜୀବନଧାରଣ ମାନରେ ବ୍ୟାପକ ଓ ମୌଳିକ ପରିବର୍ତ୍ତନ ଦେଖାଦେଇଛି । ଜ୍ଞାନବିଜ୍ଞାନର ପରିମଣ୍ଡଳ ବିସ୍ତୃତ ହୋଇଛି । ନିର୍ଦ୍ଦିଷ୍ଟ ଏକ ଅଞ୍ଚଳର ପ୍ରଗତି  ସେହି ଅଂଚଳ ଭିତରେ ସୀମାବଦ୍ଧ ହୋଇ ରହୁନାହିଁ । ବିଶ୍ୱର ଅନେକ ଅଜ୍ଞାତ ତଥ୍ୟ, ସମାଜର ବିକାଶ, ପରିବର୍ତ୍ତିତ ସାଂସ୍କୃତିକ ମୂଲ୍ୟବୋଧ ସଂପର୍କରେ ଚର୍ଚ୍ଚା ଆରମ୍ଭ ହୋଇଛି । ମଣିଷ ମଣିଷ ମଧ୍ୟରେ ବ୍ୟବଧାନର ସୀମାରେଖା ହଟିଯାଇଛି । ଆମ୍ଭେମାନେ ପରସ୍ପର ପରସ୍ପର ସହିତ ସଂଯୋଜିତ ହୋଇଛେ । ଏହାଦ୍ୱାରା ପୃଥିବୀର ପରିସୀମା ସଂକୁଚିତ ହୋଇଛି । ଏହି  ସଂକୁଚିତ ପୃଥିବୀ ଭିତରେ ଉତ୍ପାଦିତ ସଂପଦର ରହସ୍ୟକୁ ଖୋଜିବାରେ ଆଜିର ଉତ୍ପାଦନ ସାମଗ୍ରୀ ଯେ ପ୍ରଭାବିତ ହୋଇଛି ତା' ନୁହେଁ, ବରଂ ବିପଣନ ସାମଗ୍ରୀ ଏବଂ ସେବା ବ୍ୟବସ୍ଥା ମଧ୍ୟ ପ୍ରଭାବିତ ହୋଇଛି । ତତ୍ସହିତ ଏହି ବ୍ୟବସ୍ଥା ସହିତ ଖାପଖୁଆଇ ଚାଲିବା ପାଇଁ ରାଜନୀତିକ ସଂରଚନା ଓ ସାମର୍ଥ୍ୟ ମଧ୍ୟ ପ୍ରଭାବିତ ହୋଇଛି । ଆଲୋଚ୍ୟ ସମୀକ୍ଷାରେ ଜଗତୀକରଣ ଓ ରାଜନୀତିକ ସଂଗଠନ ସଂସ୍କୃତି ଉପରେ କି ପ୍ରଭାବ ପକାଉଛି ସେ ସଂପର୍କରେ ଆଲୋଚନା କରାଯାଇଛି ।*

*ମୂଳଶବ୍ଦ: ସଂସ୍କୃତି, ରାଜନୀତିକ ସଂଗଠନ, ବିଶ୍ୱବଜାର, ଭ୍ରାତୃତ୍ୱବୋଧ*

## I. ଜଗତୀକରଣ ଓ ରାଜନୀତିକ ସଂଗଠନ

ରାଜନୀତିକ ସଂଗଠନ କ୍ଷେତ୍ରରେ ଜଗତୀକରଣ ପ୍ରଭାବ ଘେନି ବହୁ ବିରୋଧାଭାସ ରହିଛି । ତା' ସହିତ ବ୍ୟକ୍ତିର ଅସ୍ମିତା ମଧ୍ୟ ଯୋଡ଼ି ହୋଇଯାଇଛି । (Tan- 2005)  ଚିନ୍ତାଶୀଳମାନେ ଯୁକ୍ତି କରନ୍ତି ଯେ, ସଂପ୍ରତି ବିଶ୍ୱଜନୀନ ରାଜନୀତିକ ସଂସ୍କୃତିର ଉନ୍ମେଷ ଘଟିଛି । କେହି କେହି ମତ ଦିଅନ୍ତି, ବିଶ୍ୱଜନମାନସରେ ଆଂଚଳିକ ଅସ୍ମିତା ଆଜି ପ୍ରଶ୍ନ ସୃଷ୍ଟି କରିଛି । ଏହା ଜଗତୀକରଣର ଜଟିଳ ପ୍ରସଙ୍ଗର ପ୍ରତିଫଳନ । ଜଗତୀକରଣର ବିପଣୀରେ ଭୋଗବାଦୀ ସଂସ୍କୃତିର ପ୍ରସାର ଘଟିଛି। ସଂସ୍କୃତି ଉପଭୋଗର ସାମଗ୍ରୀ । ସାମଗ୍ରୀର  ଉତ୍ପାଦନ ଓ ଏହାର ବିପଣନ ପାଇଁ ଉଦ୍ୟୋଗର ପ୍ରତିଷ୍ଠା । ସମାଜବିଜ୍ଞାନୀମାନେ ଯାହାକୁ ସଂସ୍କୃତି ଉଦ୍ୟୋଗ ବୋଲି କହନ୍ତି, ମାନବୀୟ ଅସ୍ମିତା ସହ ଓତଃପ୍ରୋତଃ ଭାବେ ଏହା ଜଡ଼ିତ । ଏହା ଏପରି ଏକ ପରିମଣ୍ଡଳର ସଂରଚନା କରେ, ଯେଉଁଥିରେ ଆମେ ସଂକର ଜାତୀୟ ବ୍ୟକ୍ତି-ଅସ୍ମିତାକୁ ଉପଲବ୍ଧି କରିଥାଉ । ଜଗତୀକରଣ ଅସ୍ମିତାବୋଧ ନିର୍ଣ୍ଣିତ କରିପାରିନାହିଁ, ବରଂ ବ୍ୟକ୍ତି ବ୍ୟକ୍ତି ମଧ୍ୟରେ ବିଭେଦର ପ୍ରାଚୀର ଠିଆ କରାଇଦେଇଛି। ଆନ୍ତର୍ଜାତୀୟ ସମ୍ବନ୍ଧର ପ୍ରସାର ହୋଇଛି । ଭାଷା, ଧର୍ମ ଓ ସାଂପ୍ରଦାୟିକତା ଆଧାରଭୂତ ଅଣଆଂଚଳିକ ଅସ୍ମିତାବୋଧର ବିଲୁପ୍ତାୟନ ଘଟିଛି । (O' Byrne – 2003)

ଆଶାବାଦୀମାନଙ୍କ ଯୁକ୍ତିରେ ବିଶ୍ୱବଜାର, ଯୋଗାଯୋଗ ଏବଂ ବିଶ୍ୱସମସ୍ୟା ମାନବ ଜୀବନ ସହିତ ଅନ୍ତରଙ୍ଗତା ସ୍ଥାପନ କରିଛି। ଚିନ୍ତାଧାରା ସଂପ୍ରସାରିତ ହୋଇଛି।  ଦୃଷ୍ଟିଭଙ୍ଗୀରେ ମଧ୍ୟ ପରିବର୍ତ୍ତନ ଆସିଛି । ମାନବତାବାଦର ମନ୍ତ୍ରରେ ବିଶ୍ୱକୁଟୁମ୍ବୀକରଣ ସମ୍ଭବ ହୋଇଛି (Germaine – 2005) ।  ବିଶ୍ୱଗ୍ରାମର  ପରିକଳ୍ପନା ବାସ୍ତବ ରୂପରେଖ ନେଇଛି । (McLuhan and powers 1992)  ସମଗ୍ର ବିଶ୍ୱସମୁଦାୟ ଭ୍ରାତୃତ୍ୱବୋଧ ନାମକ ଏକ ଭାବଗତ ସଂପର୍କ ଭିତରେ ବାନ୍ଧି ଯୋଇଯାଇଛି। ଯଦି କୌଣସି ଏକ ରାଷ୍ଟ୍ରରେ ସୁନାମି ଭଳି ପ୍ରାକୃତିକ ବିପର୍ଯ୍ୟୟ ଦେଖାଦେଇଛି, ତତ୍କ୍ଷଣାତ୍ ବିଶ୍ୱ ସମୁଦାୟ ସହୟତାର ହାତ ବଢ଼ାଇ ଦେଉଛି । କେବଳ ସେତିକି ନୁହେଁ, ରାଷ୍ଟ୍ରର ରାଷ୍ଟ୍ର ଉପରେ  କର୍ତ୍ତୃତ୍ୱବିସ୍ତାର ପାଇଁ ଆୟୋଜିତ ଅନୈତିକ ଯୁଦ୍ଧ ବିରୋଧରେ ବିଶ୍ୱସମୁଦାୟ ମିଳିତ ଅସନ୍ତୋଷ ବ୍ୟକ୍ତ କରୁଛି । ଯେଉଁ ବିଶ୍ୱଗ୍ରାମର ପ୍ରତିଷ୍ଠା କରାଯାଇଛି, ତାହାର ଭିତ୍ତିଭୂମି ହେଉଛି ଅର୍ଥ । ଏହି ଗ୍ରାମଟି ଶେଷରେ ବହୁଭାଗୀ ହୋଇଛି । ମାନବିକ ଅଧିକାରର ଗୁରୁତ୍ୱକୁ ଏଠାରେ କ୍ଷୁଣ୍ଣ କରାଯାଇଛି । ଏପ୍ରକାର ଘଟଣା

ପ୍ରବାହ ବିରୋଧରେ ଦିନକୁ ଦିନ ସଚେତନତା ତୀବ୍ରରୁ ତୀବ୍ରତର ହେବାକୁ ଲାଗିଛି । ତେଣୁ ଜାତୀୟ ଅଧିନିୟମକୁ ଉତ୍‌ଥିତ ଆଂଚଳିକ ଗୋଷ୍ଠୀ ଖୋଲାଖୋଲି ଆହ୍ୱାନ କରୁଛନ୍ତି। ଶ୍ରେଣୀ, ଲିଙ୍ଗ, ସଭ୍ୟତା, ଜାତି, ଧର୍ମବିଶ୍ୱାସ, ଯୌନ ପ୍ରଭୃତ୍ତି ଭଳି ଉପାଦାନରେ ଗଠିତ ଏକ ବିସ୍ତୃତ ପୃଷ୍ଠଭୂମି ଏହି ସଚେତନ ଗୋଷ୍ଠୀର ହାତରେ ରହିଛି । ଅଧଃପତିତ ଏବଂ ବିଭେଦର ଶରବ୍ୟ ହୋଇଥିବା ଜନସାଧାରଣଙ୍କର ପାରସ୍ପରିକ ସମାନୁଭୂତି ଆନ୍ତର୍ଜାତୀୟ ଏକତ୍ୱବୋଧର ପ୍ରତିଷ୍ଠା ପାଇଁ ଉତ୍ସାହିତ କରୁଛି । ଇଲେକ୍‌ଟ୍ରୋନିକ୍‌ସ ମାଧ୍ୟମର ବ୍ୟବହାର ପ୍ରତି ଆଗ୍ରହ ପ୍ରକାଶ କରୁଥିବା ଜନଗୋଷ୍ଠୀ ଏହି ଜ୍ଞାନଦୀପ୍ତ ସମୁଦାୟକୁ ସମର୍ଥନ ପ୍ରଦାନ କରିଛି । (Haas – 1992)

ସମୀକ୍ଷକମାନଙ୍କ ମତରେ ' ଜଗତୀକରଣ' ରାଜନୀତିକ ଅସ୍ମିତାର ସମାଙ୍ଗୀକରଣ ଦିଗକୁ ଅଗ୍ରସର କରାଉଛି । ହୁଏତ ଏହା ସାର୍ବଜନୀନ ଅଗ୍ରଗତି ନତୁବା ସାମ୍ରାଜ୍ୟବାଦର ଦମନ। ସ୍ୱକୀୟ ଦୃଷ୍ଟିଭଙ୍ଗୀକୁ ନେଇ ଏହାକୁ ବିବେଚନା କରାଯାଇପାରେ । କେତେକ ସମୀକ୍ଷକ ଏକଥା ଉପରେ ମଧ୍ୟ ଗୁରୁତ୍ୱାରୋପ କରନ୍ତି ଯେ, ଜଗତୀକରଣ ସ୍ଥାନୀୟକରଣ ଓ ବିଭକ୍ତିକରଣର ସ୍ରଷ୍ଟା । ନିର୍ଦ୍ଦିଷ୍ଟ ଅଂଚଳରେ ଘଟୁଥିବା ଯେକୌଣସି ଏକ ଘଟଣା ଗଣମାଧ୍ୟମ ଦ୍ୱାରା ସମଗ୍ର ପୃଥିବୀରେ ସଂପ୍ରସାରିତ ହୁଏ । ଏହାକୁ ଆମେ ବିଶ୍ୱ ଆଂଚଳୀକୀକରଣ (Globalization) କହିଥାଉ । (Robertson – 1995; Mendes- 2007) ବିଶ୍ୱଗଣମାଧ୍ୟମ ଜାତୀୟ ଓ ପ୍ରାଦେଶିକ ବିଭେଦତା ସଂପର୍କରେ ଅବଗତ ହୋଇଥାଏ । ପରିଣତି ସ୍ୱରୂପ ଅସ୍ମିତା ଗୋଟିଏ ସୀମିତ ପରିଧି ମଧ୍ୟରେ ସଂରକ୍ଷିତ ହୋଇ ରହେନାହିଁ, ବରଂ ସର୍ବଦା ବିଭାଜିତ ହେବାର ସମ୍ଭାବ୍ୟ ଭୟଦ୍ୱାରା ସଦା ଆକ୍ରାନ୍ତ ହୋଇଥାଏ । ଦୃଷ୍ଟାନ୍ତସ୍ୱରୂପ, ଭାରତବର୍ଷରେ ସାମାଜିକ ଶ୍ରେଣୀ ବିଭାଗ ଜାତିଗତ ଅସ୍ତିତ୍ୱ ସହ ସହ ସଂବଧିତ ହୋଇଛି। ଏଥିପାଇଁ ଯେ ଆପଣା ଜାତିଗୋତ୍ର ଭିନ୍ନ ଅବଶିଷ୍ଟ ମଣିଷମାନେ ଦାସ, ଏତାଦୃଶ ମାନସିକତା ଗୋଟିଏ ଜାତି ଉପରେ କର୍ତ୍ତୃତ୍ୱବିସ୍ତାର କରିବା ପାଇଁ ଉଦ୍ଦିଷ୍ଟ । ତେଣୁ ଦଳିତ ବସ୍ତିର ବାସିନ୍ଦାମାନଙ୍କର ସଂସାରକୁ ସତେଯେମିତି ବିଶ୍ୱ ଗ୍ରାସିଯାଇଛି। (Umakanta and Thorat – 2004)

ଜାତିଗତ ଅସ୍ମିତା କ୍ଷେତ୍ରରେ ଅନ୍ୟାନ୍ୟ ବିଶେଷ ସଂପ୍ରଦାୟ- ଯେପରିକି ସଂଖ୍ୟାଲଘୁ ଗୋଷ୍ଠୀ, ସ୍ଥାନୀୟ ଜନତା ସଂକୀର୍ଣ୍ଣ ଜାତୀୟବୋଧ ମାନସିକତାକୁ ନେଇ ଦୃଢ ସ୍ୱର ଉତ୍ତୋଳନ କରୁଛି । ସମୟେସମୟେ ବୃହତ୍ତର ବ୍ୟକ୍ତିଗତ ସ୍ୱାତନ୍ତ୍ର୍ୟ ପାଇଁ ମଧ୍ୟ ଆନ୍ଦୋଳନ ମାଧ୍ୟମରେ ବଦ୍ଧପରିକର ହୋଇଥାଏ । ସଂସ୍କୃତି ମଧ୍ୟ ଜଗତୀକରଣ ସହ ଏପରି ଯୋଡ଼ି ଯୋଇଯାଇଛି ଯେ, ମନେହେଉଛି ଯେମିତି ଜଗତୀକରଣର ପରିଧି ମଧ୍ୟରେ ଅର୍ଥନୀତି, ସମାଜବିଜ୍ଞାନ, ଇତିହାସର ନେତୃତ୍ୱ ନାହିଁ; ସଂସ୍କୃତି ମଧ୍ୟ ଅନୁବନ୍ଧିତ ହୋଇଛି। ସମୂହ ଜୀବନର ଏକକ ଭାବେ ଯଦି ଗ୍ରାମକୁ ଗ୍ରହଣ କରାଯାଏ, ତା'ହେଲେ ବିଶ୍ୱଗ୍ରାମର ପରିକଳ୍ପନାରେ ଚିନ୍ତାନାୟକମାନେ ଗୋଟିଏ ଅଂଚଳ ସହିତ ଆଉ ଗୋଟିଏ ଅଂଚଳର ସାଂସ୍କୃତିକ ମିଶ୍ରଣ ଉପରେ ଗୁରୁତ୍ୱାରୋପ କରିଛନ୍ତି। ସମୟେ ସମୟେ ବ୍ୟକ୍ତି ନିଜକୁ ସାର୍ବଜନୀନ ସ୍ଥିତି, ରାଷ୍ଟ୍ର ଏବଂ ସ୍ଥାନୀୟ ଅସ୍ମିତା ମଧ୍ୟରୁ ନିଜକୁ ମୁକ୍ତ କରିପାରେନା। ଚିନ୍ତାଶୀଳମାନଙ୍କ ମତରେ ହୁଏତ ସେମାନଙ୍କୁ ପ୍ରାଦେଶିକ ଜାତୀୟତାବାଦୀର ଆଖ୍ୟା ଦିଆଯାଇଛି। ତେଣୁ ସଂପ୍ରତି ପରିଲକ୍ଷିତ ଏପ୍ରକାର ଜାତୀୟ ଐକୀକରଣର କେନ୍ଦ୍ରରେ ରହିଛି ଇଉରୋପୀୟ ସଂଘ ଏବଂ ସାର୍କ ରାଷ୍ଟ୍ର ସମୂହ । କିନ୍ତୁ ଜଗତୀକରଣକୁ ଏ ପ୍ରକାର ପ୍ରାଦେଶିକ ଅସ୍ତିତ୍ୱର ଆବିର୍ଭାବ ପାଇଁ ମୁଖ୍ୟ କାରଣ ରୂପେ ଗ୍ରହଣ କରାଯାଇନପାରେ । ବିଶ୍ୱବଜାରର ସମ୍ଭାବ୍ୟ ସର୍ବଗ୍ରାସୀ ଭୟ ଏହି ନୂଆଧାରା ପାଇଁ ସାମୟିକ ଉତ୍ତେଜନା ସୃଷ୍ଟିକରେ, ଜଗତୀକରଣ ବିଶ୍ୱରେ ସାର୍ବଭୌମତ୍ୱ ଦୁର୍ବଳ ହେବାର ସମ୍ଭାବନାକୁ ଏଡାଇଯାଇ ସଂହତିବୋଧ ପ୍ରତିଷ୍ଠା କରିବାରେ ସହାୟକ ହୋଇଥାଏ। ଇଉରୋପୀୟ ସଂଘ ନୂତନ ସାଂସ୍କୃତିକ ଅସ୍ମିତା ସୃଷ୍ଟି ପାଇଁ ପ୍ରଚେଷ୍ଟାରତ, ଯାହା ସ୍ୱଦେଶୀୟ ରାଜନୀତିକୁ ମଧ୍ୟ ପ୍ରଭାବିତ କରିଥାଏ। (Kraus- 2008)

ଶକ୍ତିଶାଳୀ ଆନ୍ତର୍ଜାତୀୟ ପ୍ରବାସୀ ସମୁଦାୟର ଆବିର୍ଭାବରେ ମୂଳହେତୁ ଭାବେ ଜଗତୀକରଣକୁ ଗ୍ରହଣ କରାଯାଉଛି । (Shetter – 2007) ଆପଣାକୁ ଅଭିଜାତ ମନେକରୁଥିବା ପ୍ରବାସୀ ସମୁଦାୟ ମଧ୍ୟରେ ଅତୀତର ଯୋଗସୂତ୍ର ସ୍ଥାପନ ହେବା ସମୟ ସାପେକ୍ଷ ଥିଲା । ମାତ୍ର ଇଲେକ୍‌ଟ୍ରୋନିକ୍‌ସ ଗଣମାଧ୍ୟମର ଉଦ୍‌ଭାବନ ଆଜିର ବିଶ୍ୱକୁ ପରିବର୍ତ୍ତନ କରିଛି । ଜଣେ ବିଶ୍ୱର କୋଣ ଅନୁକୋଣରେ ଥିଲେ ମଧ୍ୟ ରକ୍ତ ସହିତ ରକ୍ତର ସଂପର୍କ, ଜାତି ସହିତ ଜାତିର ସଂପର୍କ ଯୋଡ଼ି ହୋଇଛି । ଇଲେକ୍‌ଟ୍ରାନିକ୍‌ସ ଗଣମାଧ୍ୟମ ଓ ସୂଚନାପ୍ରଯୁକ୍ତି ବିଦ୍ୟାକୁ କୃତଜ୍ଞତା। କେବଳ ସ୍ୱଦେଶ ଭିତରେ ଯେ ଏମାନେ ପରସ୍ପରର ସଂସ୍ପର୍ଶରେ ଆସିଛନ୍ତି ତା' ନୁହେଁ, ପୃଥିବୀର ଯେକୌଣସି ଭୂଖଣ୍ଡରେ ଏହା ସମ୍ଭବପର ହୋଇଛି। ବିରାଟ ପୃଥିବୀକୁ ଏମାନେ କୁନି ପୃଥିବୀରେ ରୂପାନ୍ତରିତ କରିପାରିଛନ୍ତି। ବିଶ୍ୱାୟନରେ ବିତ୍ତ ଏବଂ ନିଯୁକ୍ତି, ଦ୍ୱୈତନାଗରିକତ୍ୱ ସମ୍ଭବପର ଯୋଇପାରିଛି। ପ୍ରବାସୀ ଭାରତୀୟ ସମୁଦାୟ ବର୍ତ୍ତମାନ ବିଶ୍ୱମୁକ୍ତ ପରିଭ୍ରମଣ ଓ ସଂପତ୍ତିଗତ ଅଧିକାର ଭଳି କିଛି ସୁବିଧା ହାସଲ କରିପାରିଛନ୍ତି। କାରଣ ସେମାନଙ୍କ ପାଖରେ ଅର୍ଥବିନିଯୋଗ କରିବାର କ୍ଷମତା ଓ ସୁଯୋଗ ରହିଛି । ଦେଶୀୟ ରାଜନୀତିରେ ହସ୍ତକ୍ଷେପ କରିବା ସହିତ ଇଚ୍ଛାନୁରୂପଭାବେ ଅଧିକାର ସାବ୍ୟସ୍ତ କରିବାକୁ ମଧ୍ୟ ଏମାନେ ପଛାନ୍ତି ନାହିଁ। ଜଗତୀକରଣ ଦ୍ୱାରା ଆଧାରଭୂତ ରାଜନୀତି ଏବଂ ରାଜନୀତିକ ଗୋଷ୍ଠୀର ରୂପାନ୍ତରୀକରଣ ଘଟିଛି। ଏହି ପ୍ରକ୍ରିୟାରେ ପାରସ୍ପରିକ ଗଣତାନ୍ତ୍ରିକ ପଦ୍ଧତି ଦୁଇପ୍ରକାର ବୈଶିଷ୍ଟ୍ୟ ଦେଖିବାକୁ ମିଳିଛି । ତାହା ହେଉଛି ସହମତି ତତ୍ତ୍ୱ- ଯେଉଁଠାରେ ନାଗରିକ ତା'ର ଶାସନକର୍ତ୍ତା ଚୟନ କରେ । ସହାନୁଭୂତି ତତ୍ତ୍ୱ - ଶୀଘ୍ର ପ୍ରତିକ୍ରିୟା ପ୍ରକାଶ କରୁଥିବା ଅବସ୍ଥା। ଏହି ତତ୍ତ୍ୱରେ ନାଗରିକର ଆବଶ୍ୟକତା ପ୍ରତି ଶାସକ ଯଥେଷ୍ଟ ଦାୟିତ୍ୱବାନ ମନେହୁଏ ।

ଜଗତୀକରଣ ଗଣତନ୍ତ୍ରର ବିରୋଧୀ କି? ସଂପ୍ରତି ଜଗତୀକରଣ ଗଣତନ୍ତ୍ର ପାଇଁ ବିସ୍ତାରିତ ଭୂମି ପ୍ରସ୍ତୁତ କରିବା ପରିବର୍ତ୍ତେ ସଂକୁଚିତ କରିଛି । ନିର୍ଦ୍ଦିଷ୍ଟ ସୀମା ନିର୍ଦ୍ଧାରଣ କରିଛି ବୋଲି ସହମତି ପ୍ରକାଶ ପାଇଛି । ଆର୍ଥିକ ବଜାର ଓ ଆତଙ୍କବାଦୀ ନେଟୱାର୍କ ଭଳି ସଂପର୍କ ସ୍ଥାପନର ନୂତନ ପ୍ରବାହ ପାରସ୍ପରିକ ସ୍ୱାଭାବିକ ଜାତୀୟ ନିୟନ୍ତ୍ରଣ ପଦ୍ଧତିକୁ ଅତିକ୍ରମ କରିଛି । ବଜାରନୀତିର ସଂପ୍ରସାରଣରେ ସ୍ୱାଭାବିକ ଭାବରେ ଗଣତନ୍ତ୍ର ତିଷ୍ଠି ପାରିବ ନାହିଁ। ଉପଭୋକ୍ତା ମାନଙ୍କର ବିଶେଷ ରୁଚି ସହିତ ଗଣତନ୍ତ୍ର ରାଷ୍ଟ୍ରର ନାଗରିକମାନଙ୍କର ନାଗରିକତ୍ୱ ସମପର୍ଯ୍ୟାୟବାଚୀ ନୁହେଁ । ଜଗତୀକରଣ

ସବୁ ବର୍ଗର ଜନସାଧାରଣଙ୍କ ପାଖରେ ସମାନ ଭାବରେ ଶ୍ରଦ୍ଧାଭାଜନ ହୋଇପାରି ନାହିଁ । ଦେଶ ମଧ୍ୟରେ ଓ ଦେଶଦେଶ ମଧ୍ୟରେ ବ୍ୟତିକ୍ରମ ବା ବିଭେଦ ସୃଷ୍ଟି ହୋଇଛି ।

ସମୟେ ସମୟେ ଯୁକ୍ତି କରାଯାଏ ଯେ, ନୂତନ ଇଲେକ୍ଟ୍ରାନିକ୍ସ ଗଣମାଧ୍ୟମ ଗଣତନ୍ତ୍ରର ଢାଂଚାଗତ ବିକାଶ ସାଧନ କରେ । ଇଂଟରନେଟ୍ କ'ଣ ଆନ୍ତର୍ଜାତୀୟସ୍ତରର ଗଣତାନ୍ତ୍ରିକ ବିପ୍ଳବର ଆନୟନ କରିପାରିବ? ସ୍ୱୟଂଶାସନର ପରିମଣ୍ଡଳ ଆଡ଼କୁ ଏହା ବାଟ କଢାଇ ନେବ କି ? ଗଣତନ୍ତ୍ରର ଏଇ ବିକାଶ ପ୍ରକଳ୍ପ କ୍ଷେତ୍ରରେ ସଂଚାର ବିପ୍ଳବର ସେଭଳି କୌଣସି ଅବଦାନ ଥିଲାଭଳି ମନେହୁଏ ନାହିଁ । ଯଦିଓ ଏହା ଦ୍ୱାରା ପ୍ରତିଯୋଗିତା କରିବାର ସାମର୍ଥ୍ୟ ଅଛି, ଏହାର ପ୍ରତିଯୋଗିତା ଉତ୍ତର ଗୋଲାର୍ଦ୍ଧର ଅଧିବାସୀମାନଙ୍କୁ ଅଯାଚିତ ସୁବିଧାପ୍ରଦାନ କରିଛି । ବିତ୍ତଶାଳୀ ରାଷ୍ଟ୍ରମାନେ ପରସ୍ପର ସହିତ ସହଯୋଗର ହାତ ମିଳାଇଛନ୍ତି । ବାଣିଜ୍ୟ ଉପରୁ ରାଷ୍ଟ୍ରର କଟକଣା ହଟିଯିବା ଫଳରେ ଇ-ବାଣିଜ୍ୟ କ୍ଷେତ୍ରରେ ମୁକ୍ତ ପ୍ରବେଶ ଘଟିଛି ।

ଜଗତୀକରଣ କର୍ମଜୀବୀମାନଙ୍କର ବାଧା ଉପୁଜାଇଛି। ଚାର୍ଲସ ଟିଲିଙ୍ଗ ଯୁକ୍ତିରେ – ସାର୍ବଭୌମ ରାଷ୍ଟ୍ରମାନଙ୍କ ସହ ସଂଗ୍ରାମରୁ ଯେଉଁ ଶ୍ରମ ଅଧିକାର ପ୍ରତିଷ୍ଠା ହୋଇଛି, ତାହା ସଂପ୍ରତି ସାର୍ବଭୌମକୁ ଦୁର୍ବଳ କରିବା ଭଳି ବିପଦ ସୃଷ୍ଟି କରିଛି । ବିଂଶ ଶତକର ମଧ୍ୟଭାଗରେ ଆର୍ଥନୀତିକ ଆନ୍ତର୍ଜାତୀକରଣ, ଟୋଲିଙ୍କ ବିଚାରରେ, ରାଷ୍ଟ୍ରର ସାର୍ବଭୌମତାକୁ କ୍ଷୁଣ୍ଣ କରୁଛି । ଜାତୀୟ ଅଧିନିୟମ ଯାହା ମଧ୍ୟରେ ଶ୍ରମିକର ଅଧିକାର ସାବ୍ୟସ୍ତ ଅନ୍ତର୍ଭୁକ୍ତ, ତାହା ସଠିକ୍ ଭାବରେ କାର୍ଯ୍ୟକାରୀ କରାଯାଇ ପାରୁନାହିଁ । ଗଣତାନ୍ତ୍ରିକ ଅଧିକାର ରାଷ୍ଟ୍ରର ଅନ୍ତର୍ନିର୍ଯ୍ୟାସ । ତାହାର ଅବକ୍ଷୟରେ ଗଣତନ୍ତ୍ରରେ ମର୍ଯ୍ୟାଦାହୀନ ଅପରିହାର୍ଯ୍ୟ । ସଂକ୍ଷେପରେ କହିଲେ, ଜଗତୀକରଣ ପୂର୍ବ ପ୍ରଚଳିତ ପ୍ରତିଷ୍ଠିତ ଶ୍ରମ ଅଧିକାର ଗୁଡ଼ିକ ପ୍ରତି ବିପଦ ସୃଷ୍ଟି କରିଛି ଓ ତାହାର ପରିଚାଳନା ପାଇଁ ରାଷ୍ଟ୍ରର ଅସାମର୍ଥ୍ୟତା ସୂଚାଇ ଦେଇଛି ।

ଗଣତାନ୍ତ୍ରିକ ପଦ୍ଧତିରେ ନୂଆ ଭାବରେ ପ୍ରବର୍ତ୍ତନ ପାଇଁ ସଂପ୍ରତି ଜଗତୀକରଣ ଅନୁପ୍ରେରିତ କରିଛି । ଏହୀ ଧାରା ରାଜନୀତିକ ପ୍ରଶସ୍ତୀକରଣ ଓ ଗଣତାନ୍ତ୍ରୀକରଣ ସହ ସଂଶ୍ଲିଷ୍ଟ। ଅସୀମ ମାନବିକ ଅଧିକାରର ପରିମଣ୍ଡଳ ମଧ୍ୟରେ ଏହାର ସତ୍ୟତା ନିହିତ । ମାନବିକ ଅଧିକାରର ବିଚାର ବିମର୍ଷ ଓ ଆନ୍ତର୍ଜାତୀୟ ସାମାଜିକ ଆନ୍ଦୋଳନ ମାଧ୍ୟମରେ ଗୋଟିଏ ସାର୍ବଭୌମ ରାଜନୈତିକ ପରିମଣ୍ଡଳ ସୃଷ୍ଟିର ଆଭିମୁଖ୍ୟ ପ୍ରକାଶ ପାଇଛି । ଅର୍ଥନୀତିଜ୍ଞ ଅମର୍ତ୍ତ୍ୟ ସେନ୍ଙ୍କ ମତରେ (2000:127) ବାସ୍ତବରେ ଜଗତୀକରଣ ପ୍ରଚେଷ୍ଟା କରେନାହିଁ । କ୍ରମବର୍ଦ୍ଧମାନ ବିଶ୍ୱାୟିତ ଅର୍ଥନୀତିକୁ ମୌଳିକ ନୀତିନିଷ୍ଠ, ରାଜନୀତିକ ଓ ସାମାଜିକ ଧାରାରେ ତଉଲି ବିଶ୍ୱଭାବର ବିକାଶ କରାଇଥାଏ ।

ଜଗତୀକରଣ ଗାଣତାନ୍ତ୍ରିକ ପଦ୍ଧତି ପାଇଁ ଶୁଭଙ୍କର ହୋଇପାରେ, ନ ହୋଇପାରେ । ଏହା ଗଣତନ୍ତ୍ରର ପ୍ରବୃତ୍ତିର ରୂପାନ୍ତରୀକରଣରେ ସହାୟତା କରେ । ଏଥିରେ ଦ୍ୱିମତ ନାହିଁ। ବିଶ୍ୱାୟନ ଆଧାରତ ଗଣତନ୍ତ୍ର ହୁଏତ ଅବାସ୍ତବ ମନେ ହେଲେ ହେଁ ଜାତୀୟ ସରକାର ବିଶ୍ୱାସନ ସମସ୍ୟା ପ୍ରତି ସମ୍ବେଦନଶୀଳ ମନେ ହୋଇଛି । ବହୁରାଷ୍ଟ୍ରୀୟ ନିଗମ ଓ ଆନ୍ତର୍ଜାତୀୟ ବିପ୍ଳବ ଏହାର ଗୋଟିଏ ଗୋଟିଏ ଦୃଷ୍ଟାନ୍ତ । ବିଶ୍ୱଶାସନର ଗାଣତାନ୍ତ୍ରୀକରଣ ପ୍ରତ୍ୟେକ ଜାତୀୟ ସରକାରଙ୍କୁ ପ୍ରଭାବିତ କରେ । ବିଶ୍ୱସ୍ତରରେ ପ୍ରଣୀତ ନୂତନ ଶାସନନୀତି ଉଭୟ ଅନୁଲମ୍ବ ଓ ଅନୁ ପ୍ରସ୍ଥଯୁକ୍ତ ।

## II. ପ୍ରାନ୍ତବକ୍ତବ୍ୟ

ଉପରୋକ୍ତ ଚର୍ଚ୍ଚାରୁ ସୁସ୍ପଷ୍ଟ ଯେ ଜଗତାୟନ ଗଣତନ୍ତ୍ର ପରିଧିର ନିର୍ଦ୍ଧାରକ ସାଜିଛି । କେବଳ ଯେ ନୀତି ନିର୍ଦ୍ଧାରଣ କରିବାର କ୍ଷମତା ଉପରେ ଅପୋଷ ସମାଧାନ କରାଯାଇଛି ତାହା ନୁହେଁ ବରଂ ଗଣତାନ୍ତ୍ରିକ ନେତୃତ୍ୱ ଆଧାରରେ ଗାଣତାନ୍ତ୍ରିକ ପଦ୍ଧତି ଏବଂ ପ୍ରୟୋଗର ପ୍ରଭାବକୁ ପୁନର୍ବାର ପରୀକ୍ଷିତ କରିବାର ସମୟ ଆସିଛି । ନିର୍ବାଚନ ମଣ୍ଡଳୀର ପ୍ରବୃତ୍ତି, ଉପସ୍ଥାପିତ କରିବାର ପ୍ରବୃତ୍ତି, ଅଂଶଗ୍ରହଣ କରିବାର ଶୈଳୀ ଏବଂ ପରିସର, କ୍ଷମତାର ପରିସର ଏବଂ ପ୍ରବୃତ୍ତି ଇତ୍ୟାଦି ଏହାର ଅଂଶବିଶେଷ। ଜଗତାୟନକୁ ସାଦରେ ଗ୍ରହଣ କରିନେଉଥିବା ବିଶ୍ୱସମୁଦାୟର ଗତିରୋଧ କରିବାରେ କୌଣସି ଶାସନ କରୁଥିବା ସରକାର ସମର୍ଥ ହୋଇ ପାରିନାହିଁ। ସମାଜର ବିଭିନ୍ନ ସ୍ତରରେ ପରିବର୍ତ୍ତନର ଆନୟନ ଗଣତାନ୍ତ୍ରିକ ପଦ୍ଧତିରେ ଏକ ନୂଆ ଅଧ୍ୟାୟ ଯୋଡ଼ିଛି।

ପ୍ରଥମତଃ ଏକ ଜାତୀୟ ବିବରଣୀ ସହିତ ଆନ୍ତର୍ଜାତୀୟମାନର ଅନ୍ତର୍ଭୁକ୍ତୀକରଣ ହୋଇଛି । ମାନବିକ ଅଧିକାରର ସୁରକ୍ଷା, ଶିଶୁ ଶ୍ରମିକ ପ୍ରଥା ବିରୋଧରେ ବିରୋଧାଭାସ, ଗୁପ୍ତ ମାନବ ଚାଲାଣ, ଉଶୃଙ୍ଖଳ ଯୌନ ଜୀବନ ପ୍ରତି ଭାରତୀୟ ଜନତା ସଜାଗ ହୋଇଛନ୍ତି । ଏତାଦୃଶ ଘଟଣାମାନ ହୁଏତ ସମାଜର କିଛି ଗୋଷ୍ଠୀଙ୍କ ଦ୍ୱାରା ଗ୍ରହଣୀୟ ହୋଇ ନାହିଁ କିନ୍ତୁ ଏହି ଜନ ଆଦୃତ ନୀତିନିୟମ ବିରୋଧରେ ବିରୋଧାଭାସର ସ୍ୱରକୁ ମଧ୍ୟ ଅଣଦେଖା କରିହେବ ନାହିଁ ।

ଦ୍ୱିତୀୟରେ ତଥ୍ୟର ଦ୍ରୁତ ପ୍ରଚାର ଏବଂ ପ୍ରସାର ଦ୍ୱାରା ନାଗରିକ ସଚେତନଶୀଳ ହୋଇଛନ୍ତି । ପୃଥିବୀର ଚିନ୍ତାଶୀଳମାନେ ଏହା ଉପରେ ଗୁରୁତ୍ୱାରୋପ କରିଛନ୍ତି। ଏହା ବ୍ୟକ୍ତିବିଶେଷକୁ ଜାଗ୍ରତ କରୁଛି । ଶାସକବର୍ଗର ଉଶୃଙ୍ଖଳତା ବିରୋଧରେ ବ୍ୟକ୍ତିବିଶେଷ ସହ ଗୋଷ୍ଠୀଗତ ଜନସାଧାରଣଙ୍କୁ ମଧ୍ୟ ସଜାଗ କରାଉଛି । ଦେଶର ବିଭିନ୍ନ ପ୍ରାନ୍ତରେ ଘଟୁଥିବା ସାମାଜିକ ହିଂସା, ଅନୀତି, ଅନିୟମିତତା ସହିତ ବିକାଶର ଆଦର୍ଶ ପ୍ରକଳ୍ପକୁ ବିଗତ ଦିନରେ ଆମେ ଦେଖିପାରିଛେ । ସ୍ଥାନାନ୍ତରୀକରଣ , ପାଣିପାଗ ପରିବର୍ତ୍ତନ ଏବଂ ସ୍ୱାଇନ୍ ଫ୍ଲୁ ଭଳି ଆତଙ୍କିତ ବିପଦ ସୃଷ୍ଟିକୁ ନେଇ ଜନସମୁଦାୟ ସଚେତନ ହୋଇଛି । କିନ୍ତୁ ପୂର୍ଣ୍ଣ ମାତ୍ରାରେ ଏହାକୁ ପ୍ରତିହିତ କରିବାକୁ ସମର୍ଥ ହୋଇପାରି ନାହିଁ ।

ତୃତୀୟରେ ଉପରୋକ୍ତ ଘଟଣାବଳୀ ସହ ସଂପୃକ୍ତି ଏକ ନିର୍ଦ୍ଦିଷ୍ଟ ପରିସର ମଧ୍ୟରେ କି ଗାଣତାନ୍ତ୍ରିକ ଅଧିକାର ପାଇଥିବା ଜନସାଧାରଣଙ୍କ ପାଖରେ ସୀମିତ ହୋଇପାରିନାହିଁ । ଏହା ପରିବ୍ୟାପ୍ତ ହୋଇଛି । ଏହାର ପରିମଣ୍ଡଳ ମଧ୍ୟକୁ ପ୍ରବାସୀ ଭାରତୀୟମାନଙ୍କର ଅନୁପ୍ରବେଶ ଘଟିଛି। ସେମାନେ ମଧ୍ୟ ଏ ସଂପର୍କରେ ଅବଗତ ହୋଇଛନ୍ତି। ଦଳିତ ଅବହେଳିତ ଗୋଷ୍ଠୀର ଅଧିକାର ସପକ୍ଷରେ ଯୁକ୍ତି ବାଢ଼ିବା ଆରମ୍ଭ କରିଛନ୍ତି। ଏହାକୁ ଆଧାର କରି ଜନସାଧାରଣ ମଧ୍ୟ ତାର ସୁଚିନ୍ତିତ ମତାମତ ସୋସିଆଲ୍ ମିଡ଼ିଆ ମାଧ୍ୟମରେ ବ୍ୟକ୍ତ କରିବାକୁ ଆଗ୍ରାଧିକାର ଦିଆଯାଉଛି। କୌଣସି ସାମାଜିକ ବ୍ୟକ୍ତିବିଶେଷ ତାର ଚିନ୍ତାଧାରାର ପରିପ୍ରକାଶ ପାଇଁ ସମର୍ଥ ହୋଇପାରିଛି ।

ଚତୁର୍ଥରେ ସ୍ଥାନାନ୍ତରୀକରଣ, ବିଶ୍ୱଶାନ୍ତି, ଲିଙ୍ଗଗତ ବୈଷମ୍ୟ, ପରିବେଶ ବିଜ୍ଞାନ, ଶୋଷିତ ଶ୍ରମିକ ବର୍ଗଙ୍କର ବିରୋଧାଭାସର ସ୍ୱର ଉଠାଇବା ପାଇଁ ସାମାଜିକ ସଂଗଠନ ଓ ସାମାଜିକ ଆନ୍ଦୋଳନ ମାନ ସଂଗଠିତ ହୋଇଛି । ଏହି ସଂଗଠନମାନ ମାନବ ସମାଜର ଜୀବନଧାରଣର ମାର୍ଗ ସଂପର୍କରେ ସଚେତନତା ସୃଷ୍ଟି କରାଇବା ସହ ଏହାକୁ ଏକ ନ୍ୟାୟ ସଂଗତ ଯଥାର୍ଥ ବିଧିବ୍ୟବସ୍ଥା ଭିତରେ ପ୍ରତିଫଳିତ କରାଇବାକୁ ପ୍ରୟାସ କରିଛନ୍ତି । ଏହି ସଂକ୍ରାନ୍ତୀୟ ଅନେକ ଘଟଣା ଏକ ଭୌଗୋଳିକ ସୀମାରେଖା ମଧ୍ୟରେ ସୀମାବଦ୍ଧ ହୋଇ ରହିନାହିଁ । ଏହି ଆନ୍ଦୋଳନର ପ୍ରଭାବ ବିଶ୍ୱରୁ ଆଞ୍ଚଳିକ କ୍ଷେତ୍ରକୁ ଏବଂ ଆଞ୍ଚଳିକ କ୍ଷେତ୍ରରୁ ବିଶ୍ୱସମୁଦାୟ ପାଖରେ ପହଂଚିପାରୁଛି।

ପଞ୍ଚମରେ ଜଗତାୟନ ମଧ୍ୟ ବିଶ୍ୱ ପ୍ରତି ଆତଙ୍କ ସୃଷ୍ଟିକାରୀ ସାବ୍ୟସ୍ତ ହୋଇଛି। ଆମ ଜୀବନଧାରା, ସଂସ୍କୃତି, ଚାଲିଚଳନ କେବଳ ଆମର ହୋଇ ରହିନାହିଁ । ପୃଥିବୀର ବିଶାଳତା ହଟିଯାଇଛି । ଆଜିର ପୃଥିବୀ ଏକ କୁନି ପୃଥିବୀ । ଏହି କୁନି ପୃଥିବୀର ଯେକୌଣସି କୋଣରେ ଯାହାକଲେ ମଧ୍ୟ ତାହା ଲୁକ୍‌କାୟିତ ହୋଇ ରହୁନାହିଁ । ଦୃଷ୍ଟାନ୍ତସ୍ୱରୂପ ଆତଙ୍କବାଦ ଏବଂ ମରାତ୍ମକ ରୋଗ ସ୍ୱାଇନ୍ ଫ୍ଲୁ ପାଖରେ ଯେମିତି ଜାତି, ଧର୍ମ, ବର୍ଣ୍ଣର ତାରତମ୍ୟ ନଥାଏ। ଏ ସବୁ କ୍ଷେତ୍ରରେ ଜଣେ ବ୍ୟକ୍ତି ହିଁ ନିଜର ସୁରକ୍ଷା କବଚ ସାଜେ । ଏହି ସଚେତନତାର ବାର୍ତ୍ତା ଧୀରେଧୀରେ ସମାଜର ସବୁ ବର୍ଗଙ୍କ ପାଖରେ ପହଞ୍ଚି ପାରିଛି ।

ପରିଶେଷରେ ଏହା ସ୍ୱୀକାର୍ଯ୍ୟ ଯେ, ସଂପ୍ରତି ଗଣତନ୍ତ୍ରକୁ ଇ-ଗଣତନ୍ତ୍ରର ରୂପାୟନ କହିଲେ ଅତ୍ୟୁକ୍ତି ହେବ ନାହିଁ । ଅନୁଧ୍ୟାନ ମାଧ୍ୟମରେ ବକ୍ତବ୍ୟ ଉପସ୍ଥାପନ କରିବାର ସାମର୍ଥ୍ୟ ଇ-ଗଣତନ୍ତ୍ର ପାଖରେ ଅଛି । ଏଠାରେ ଅସ୍ମିତା ଗୁରୁତ୍ୱପୂର୍ଣ୍ଣ ନୁହେଁ ବରଂ ତର୍କଦ୍ୱାରା ଅନୁସନ୍ଧାନ ଗୁରୁତ୍ୱପୂର୍ଣ୍ଣ। ଏହାକୁ ମଧ୍ୟ ନିର୍ଦ୍ଦିଷ୍ଟ ଭୌଗୋଳିକ ସୀମାରେ ସୀମାବଦ୍ଧ କରାଯାଇନପାରେ । ସରକାରୀ କ୍ଷେତ୍ରରେ ଆଂଚଳିକ ଏବଂ ବିଶ୍ୱ ମଧ୍ୟରେ ଦୂରତ୍ୱ ହଟିଯାଇଛି । ପ୍ରଭାବ ସୃଷ୍ଟିକାରୀ ରାଜନୈତିକ ଘଟଣାମାନ ସାମାଜିକ ଘଟଣାବଳୀ ସହିତ ସୂତ୍ରାୟିତ ହୋଇଛି।

**ସହାୟକ ଗ୍ରନ୍ଥ**


1. Aguilar, D.D. and A.E. Lacsamana, eds. (2004) Women and Globalization. Humanity Books.
2. Alexander, T. (1996) Unraveling Global Arartheid. Cambridge: Polity Press.
3. Amin, Samir(2001) Imperialism and Globalisation, Monthly Review, Vol. 53, No.2, pp.
4. Bardhan, Pranab (2006), Globalization and Rural Poverty, World Development, Vol. 34, No-8,pp. 1393-1404.
5. Bhagwati, Jagdish(2005). In Defense of Globalization. Oxford University Press.
6. Brooks, Stephen G. (1999). 'The Globalization of Production and the Changing Benefits of Conquest', Journal of Conflict Resolution, Vol.43,
7. No.5, pp.646-670.